# ଶରତ ପାଇଁ ଗୀତ

ଲେଖକ
ଦାଶ ବେନହୁର




କାଞ୍ଚନ
ଗଜପତି ନଗର, ସୁତାହାଟ, କଟକ-୭୫୩୦୦୧





ଲେଖକ
ଦାଶ ବେନହୁର
କଥାକାର-୬ମ-୧୬୧, ଶୈଳଶ୍ରୀ ବିହାର,
ଭୁବନେଶ୍ୱର-୭୫୧୦୨୧

ପ୍ରକାଶକ
**ସନ୍ତୋଷ ପବ୍ଲିକେଶନ୍ସ୍**
କାଞ୍ଚନ
ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧

ମୁଦ୍ରଣ
ସତ୍ୟଭାମା ୱେବ୍ ଅଫ୍‌ସେଟ୍
ଚହଟା ନଗର, ଅଭିନବ ବିଡ଼ାନାସୀ, କଟକ-୭୫୩୦୧୪

ପ୍ରଥମ ପ୍ରକାଶ
୨୦୧୨

ମୂଲ୍ୟ
ଚାଳିଶ ଟଙ୍କା

ISBN 978-81-86475-69-0

## କଥା ପଦେ....

ଶରତ ଋତୁ, ଋତୁମାନଙ୍କ ଭିତରେ ରାଣୀ । ବିଶେଷ କରି ଓଡ଼ିଶାରେ ଶରତ ଋତୁ ଖୁବ୍ ମନୋହର, ବେଶ୍ ମଧୁର ।

ଏହି ଋତୁରେ ବାଟ ଘାଟ ନିର୍ମଳ ଜଣାପଡ଼େ, ଆକାଶ ଚିକ୍ ଚିକ୍ ଦିଶେ । ଘରିଆଡ଼ ସବୁଜ ଗଛ ଲତାରେ ପୂରି ଉଠେ । କେତେ ନା କେତେ ଫୁଲ ଫୁଟି ସବୁଆଡ଼ ମହକି ଯାଏ ପୁଣି କେତେ ନା କେତେ କଙ୍କି ପ୍ରଜାପତି ଉଡ଼ି ବୁଲନ୍ତି ଚଉଦିଗକୁ ଆହୁରି ମନୋରମ କରି । ଶରତ ଋତୁରେ ଦଶହରା ପଡ଼େ, ପୂଜାଛୁଟି ହୁଏ । କୁମାର ପୂର୍ଣ୍ଣମୀର ଜହ୍ନ, ରାତିର ଆକାଶକୁ ସବୁଠୁ ବେଶି ସୁନ୍ଦର କରିଦିଏ । ଏହି ଋତୁରେ ଦିନ ଯେମିତି ଭଲ ଲାଗେ, ରାତି ବି ସେମିତି ଭଲ ଲାଗେ । ଖରାର ପ୍ରକୋପ ନ ଥାଏ କି ପାଣିର ହଟହଟା ନ ଥାଏ । ଶୀତ କବାଟ କୋଣରେ ଛପିବା ପରି ଛପି ଯାଇଥାଏ କେଉଁଠି ।

ଏଇ ବହିଟିରେ ଶରତ ଋତୁ ସହିତ ଯୋଡ଼ା ଷୋହଳଟି ଗୀତ ଦିଆଯାଇଛି । ମୋର ଆଶା, ପିଲାମାନଙ୍କ ମନକୁ ଗୀତଗୁଡ଼ିକ ଛୁଇଁବ ।

- ଦାଶ ବେନହୁର



# ଏଥିରେ ଅଛି









# ମିଠୁଲି ବେଳା

ଧାନ ଗଛ ଗାଏ ଲହରା ଗୀତ,
ଲାଗେନା ଗରମ ଲାଗେନା ଶୀତ ।୧।

ସୋରି ସୋରି ଖେଳେ ପବନ ଆସି,
ଶାଗୁଆ କ୍ଷେତକୁ ଅନାଏ ଋଷୀ ।୨।

ପାଣି ଫିରି ଫିରି ବାଦଲ ଧଳା,
ମୁକୁଳା ଦିଶୁଛି ବାଡ଼ିରେ ଖଳା ।୩।

କଇଁ ପତରରେ ବସିଛି କଙ୍କି,
ଟିକକ କଥାରେ ଯାଉଛି ଶଙ୍କି ।୪।

ମହାଳୟା ଲାଗି ଗୋସେଇଁ ନନା,
ଦାଢ଼ି ବଢ଼େଇଛି କେମିତି ଅନା ।୫।

ପାଣି ହଟିଲାଣି ଶୁଖିନି ଝର,
ବରଷା ଉଣ୍ଡୁଛି ଥରକୁ ଥର ।୬।



ଶରତ ନୁହଁଇ ଦିନ କି ମାସ,
ନୁହେଁ ଫୁଲ ଫଳ ପତର ଘାସ ।୭।

ମଣିଷ ନୁହେଁ ସେ ନୁହଁଇ ପିଲା,
ନିର୍ମଳ ଆକାଶେ ମାରଇ ଚିଲା ।୮।

ଶରତ ଗୋଟାଏ ମିଠୁଲି ବେଳା,
ସବୁଠି ବସାଏ ମଉଜି ମେଳା ।୯।

ଗଛ ଲତା ମାଟି ପବନ ପାଣି,
ସବୁଠି ଶରତ ଦେଖାଏ ଠାଣି ।୧୦।

❑❑❑



# ବରଷା ଗାଇଲା ଗୀତ

ଫେରି ଯାଉ ଯାଉ ପାହାଡ଼ ଉପରେ
ବରଷା ଗାଇଲା ଗୀତ,
କହିଲା ଯାଉଛି ଆସିବି ପୁଣି ମୁଁ
ମନେ ରଖିଥିବ ମିତ ।୧।

ବରଷକେ ଥରେ ଅନୁମତି ମିଳେ
ଛଇଛମ ହେବାପାଇଁ,
ସେହିବେଳେ ସିନା ଆତୁର ଆବେଗେ
ଆସେ ମୁଁ ଧରାକୁ ଧାଇଁ ।୨।

ଗ୍ରୀଷମ କାଳରେ ରଜ ଆସୁ ଆସୁ
ମାଟି ଶୁଖି ହେଲେ ଫାଳ,
"ଯାଆଲୋ ବରଷା" ଶୁଣିଦେଲା କ୍ଷଣି
ଚଢ଼େ ମୁଁ ବଉଦ ମାଳ ।୩।



ପଟୁଆର କରି ମାଡ଼ିଆସେ ବେଗେ
ରୋଶଣି ଆଲୁଅ ତୁଲେ,
ଯିଏ ଯାହା କହୁ ଯେତେ ଗାଳି ଦେଉ
ମନ ଖୁସିରେ ମୁଁ ବୁଲେ ।୪।

ଝରାଏ ଅଜାଡ଼େ ଧୁଆଧୋଇ କରେ
ବୁଡ଼ାଏ ସଡ଼କ ଘାଟ,
ଧନୀରୁ ଗରିବ ଗାଆଁରୁ ସହର
ମାଡ଼େ ମୁଁ ଅମଡ଼ା ବାଟ ।୫।

କାମ ଯିଏ କରେ ସେଇ ସିନା ହୁଡ଼େ
ନିକମା ବେଳାଏ ସାଧୁ,
ମୁହିଁ ପାଣି ଢାଳି ଜୀବ ରଖେ ବୋଲି
ଶରତ ଖେଳାଏ ଯାଦୁ ।୬।

ମୋ ଧରମ ହେଲା ପାଣି ଅରପିବା
ଶରତ ଧରମ ଶୋଭା,
ସର୍ବେ ସିନା ନିଜ ଧରମ ରଖିଲେ
ମାଟି ହେବ ମନଲୋଭା ! ।୭।



# ଋତୁର ରାଣୀ

ବାଡ଼ରେ ଫୁଟିଲା ଟଗରଡ଼ା ଫୁଲ
ବଧୁଲି ହସିଲା ଠୋଉ,
ହରଗଉରାରେ ହସିଲା ମାଟି
ବଜାରେ ଶୁଭିଲା ଘୋଉ ।୧।

ଏଇ ଆସିଗଲା ଦଶ'ରା ପୂଜା
ଆକାଶ ହୋଇଲା ନେଳି,
ଭେଳା ଭେଳା ହୋଇ ଧଳା ବାଦଲ
କରିଲେ ତହିଁରେ ମେଳି ।୨।

ଧାନ କିଆରିରେ ପବନ ପଶି
ଖେଳିଲା କୁତୁରୁବୁତୁ,
ଏଇ ମୁଁ ଆସିଲି ରହାଁରେ ମତେ
କହିଲା ଶରତ ଋତୁ ।୩।

ଶରତ ଦେହରେ ସବୁଜ କ୍ଷେତ
ଛାତିରେ କାଚୁଲି ପାଣି,
ଋତୁରାଜ ହେଉ ବସନ୍ତ ପଛେ
ଶରତ, ଋତୁର ରାଣୀ ।୪।





ଧଳା ଚିକ୍‌ଚିକ୍ ଦଣ୍ଡେଇ ମାଛ
କଳା ମଚ୍‌ମଚ୍ କଉ,
ଗଡ଼ିଆ ପାଣିରେ କରିଲେ ନାଚ
ନିଇତି ଓଡ଼ିଶୀ, ଛଉ ।୫।

ପୂଜାର ମଉଜ ଜହକି ଗଲା
ବହକି ଉଠିଲା ଚନ୍ଦ,
ନୂଆ ପୋଷାକରେ ସାଜିଲେ ସବୁ
ଚଳିଲା ଜଣାଣ, ଛାନ୍ଦ ।୬।

କୁଆଁର ପୁନେଇଁ ଆସିବ ହେଇ
ହସିବ ଶରତ ମାଟି,
ସଭିଏଁ ହସିବେ ଜହ୍ନକୁ ଚାହିଁ
ଖୁସିରେ ପଡ଼ିବେ ଫାଟି ।୭।

ଟକର ବକର କ୍ଷୀରୀ;
ଜହ୍ନିଫୁଲ ହସେ
ଫେଁ ଫେଁ ଏକା
କାକୁଡ଼ି ହସଇ ଥିରି ।୮।

❏❏❏



# ଚିକିଚିକି

ଶରତ ହସଇ
ମୁଚୁ ମୁଚୁ,
ବିଲରେ କାଦୁଅ
ପୁଚୁ ପୁଚୁ ।୧।

ଦଶରା ସକାଶେ
ଘାଉ ଘାଉ,
ହାଟରେ ବାଟରେ
ହାଉ ହାଉ ।୨।

ପବନ ବହଇ
ସିରି ସିରି,
ଫସଲ ହସଇ
କିରିକିରି ।୩।

ବେଙ୍ଗୁଲୀ ଡାକଇ
କଟ କଟ,
ଧଣିଆ ଅନାଏ
ମଟ ମଟ ।୪।

ବଗିଚ଼ ଦିଶଇ
ଭଲି ଭଲି,
ଚଢ଼େଇ ବୁଲନ୍ତି
ହଲି ହଲି ।୫।





ଅବେଳେ ବରଷା
ତଡ଼ ତଡ଼,
ଅଦିନେ ନାକ ଟା
ସଡ଼ ସଡ଼ ।୬।

କୂଳରେ ଗଡ଼ିଶା
ଟବ ଟବ,
ଗହୀରେ କେରାଣ୍ଡି
କବ କବ ।୭।

ସଜନା ଗଛରେ
ସାଉଁ ସାଉଁ,
ରୁମିଆ ଭୋକିଲା
ହାଉଁ ହାଉଁ ।୮।

ଶରତ ଜୋଛନା
ଚିକି ଚିକି,
ତାରାଏ ହସନ୍ତି
ଫିକି ଫିକି ।୯।

ଶରତ ଆକାଶ
ନେଳି ନେଳି,
ପୁନେଇଁ ଓହ୍ଲାଏ
ଖେଳି ଖେଳି ।୧୦।





# ଶରତ ସକାଳ ମନଲୋଭା

ଦଶ'ରା ପୂଜାରେ ଗଲାଥର,
ଯାଇଥିଲି ମୁହିଁ ମାମୁଘର ।୧।

ରିକ୍ସାରେ ବସି ଆମ ଘରୁ,
ବାହାରିଲୁ ଆମେ ସକାଳରୁ ।୨।

ଚଢ଼ିଲୁ ସେଇଠୁ ରେଳଗାଡ଼ି,
ବସୁ ବସୁ ଗାଡ଼ି ଦେଲା ଛାଡ଼ି ।୩।

ସଅଁ ଛୁକ୍ ଛୁକ୍ ଡାକ ଦେଇ,
ଚାଲିଥାଏ ଗାଡ଼ି ଥେଇ ଥେଇ ।୪।

ଗାଡ଼ି ଯାଇ ହେଲା 'ନାଥବର',
ଓହ୍ଲେଇଲୁ ଆମେ ତରତର ।୫।

ମଟରଗାଡ଼ିରେ ଗଲୁ ଚଢ଼ି,
ଧଡ଼କଚ ଗାଡ଼ି ଗଲା ଗଡ଼ି ।୬।

ଯାଇ ଅଟକିଲା 'ଦେବୀଘାଟ',
ଡଙ୍ଗାରେ ବସିଲୁ ଚଟ୍‌ପଟ ।୭।

ନଈ ପାଣି ସୁଅ ସାଉଁ ସାଉଁ,
କୂଳରେ ଲାଗିଲୁ ଚାହୁଁ ଚାହୁଁ ।୮।

ଆସିଥିଲେ ମାମୁ ବେଳ ବାରି,
ଶଗଡ଼ ଗାଡ଼ିରେ ନଇପାରି ।୯।

ଚଳିଲା ଶଗଡ଼ ମାମୁଘର,
କାଳିଆ କସରା ହରବର ।୧୦।

ସକାଳୁ ବାହାରି ହେଲା ରାତି,
ମାମୁଘର ଗାଁ 'ମାଛକାତି' ।୧୧।

ସକାଳେ ଦେଖିଲି ଗାଁ ଶୋଭା,
ଶରତ ସକାଳ ମନଲୋଭା ।୧୨।

ଶେଫାଳି ବଧୂଲି ମଞ୍ଜୁଆତି,
ନାହିଁ ଧୂଳିଧୂଆଁ ନାହିଁ ତାତି ।୧୩।

ଶାଗୁଆ ସକାଳ ନେଳିନେଳି,
ପବନ ଟହଲେ ଖେଳି ଖେଳି ।୧୪।

ରହୁଁ ରହୁଁ ଛୁଟି ଗଲା ସରି,
ଛୁଟି ଗଛ ମୋର ଗଲା ମରି ।୧୫।

କୁହୁଡ଼ି କାକର ଗୁମ୍:
ମାମୁଘର ଗାଆଁ,
ପୁନେଇ ରାତି
ମଉଜ ପାଇଁ କି ଧୁମ୍ ।୧୬।



# ଶରତ ରାଜା

ଆଷାଢ଼ ଶ୍ରାବଣ
ଆସିଲେ ମାଡ଼ି,
ଝାଂଜି ପଳେଇଲା
କୁଆଡ଼େ ଛାଡ଼ି ।୧।

ମଲା ନଈ ଥିଲା
କେଉଁଠି ଶୋଇ,
ଧାଇଁଲା ହେଇଲେ
ବାଉଳା ହୋଇ ।୨।

ବିଜୁଳି ବତାସ
ପବନ ପାଣି,
କିଏ ତାଙ୍କ ନେତା
ନ ହୁଏ ଜାଣି ।୩।

ପଟୁଆର ତାଙ୍କ
ଦେଖିବ କିସ,
ସଭିଏଁ ଆସନ୍ତି
ଫୁଲାଇ ନିଶ ।୪।

କଳଛଳ ପାଣି
ଆସିଲା ବୋହି,
ସବୁଆଡ଼ ସତେ
ନବ କି ଧୋଇ ।୫।





ଭୋଦୁଅ ଅଣିଣ
　　　　ଦୂରରେ ଥାଇ,
ହାତ ହଲେଇଲେ
　　　　ମାଟିକୁ ଋହିଁ ।୬।

ରହ ରହ ଆମେ
　　　　ତଳକୁ ଯାଉଁ,
କାଳିଆ ମେଘର
　　　　ସରିବ ଦାଉ ।୭।

ଭାସିବ ବଉଦ
　　　　ସତେ କି କପା,
ନେଳିଆ ଆକାଶ
　　　　ଦିଶିବ ସଫା ।୮।

ଶରତ ଋତୁର
　　　　ସଂଗୀତ ଗାଇ,
କଇଁ କାଶତଣ୍ଡୀ
　　　　ହସିବେ ଥାଇ ।୯।

ଓଡ଼ିଶା ମାଟିରେ
　　　　ଶରତ ରାଜା,
ଡାଉଁ ଡାଉଁ କରି
　　　　ଢୋଲକି ବଜା ।୧୦।





# କୁହ ଅପା ଭାଇ କୁହ

ଗଛ ଦେହେ ଥାଇ ପିଲାଟି ପଚାରେ
କୁହ ଅପା ଭାଇ କୁହ,
କିଏ ସେ ଆମର ମାଆ ବାପା ଆମେ
କାହା ଝିଅ କାହା ପୁଅ ।୧।

ଏମିତି କାହିଁକି ମଳାବାନ୍ଧି ସବୁ
ସଜନା ଗଛରେ ଥାଇ,
ଦିନ କାଟୁଅଛେ ଅଧା ଉଜାଗରେ
ଖିଆପିଆ କିଛି ନାହିଁ ।୨।

କିଏ ସେ କହୁଛି ନିଆଁ ଟେକି ଦେବି
ଢାଳିବି ସାବୁନ ପାଣି,
ଏ ଗୁଡ଼ାଙ୍କୁ ଆଜି ଜୀବନେ ମାରିବି
ଗଛକୁ ଦେବି ମୁଁ ହାଣି ।୩।



ସବୁ ଜାଣି କିଆଁ ମଣିଷ ଜାତିଟା
ହିଂସାରେ ହେଉଛି ବାଇ,
ହାଣିବି ମାରିବି କହୁଅଛି ନିତି
ଏତେ ବୁଦ୍ଧିଶୁଦ୍ଧି ଥାଇ ।୪।

ବଡ଼ ସଁବାଳୁଆ କହଇ ଆମର
ପ୍ରଜାପତି ବାପ ମାଆ,
ବଡ଼ ହୋଇ ଆମେ ହେବା ସେହିପରି
ରଖିବା ନିଜର ନାଆଁ ।୫।

ରଙ୍ଗ ଭଳି ଭଳି ପାଖୁଡ଼ା ପରିକା
ଉଡ଼ିବା ଫୁଲରୁ ଫୁଲ,
ଆମ ଯୋଗୁଁ ସିନା ପରାଗ ସଂଗମ
କହ କିଏ ଆମ ତୁଲ ।୬।

ଶରତ ଋତୁରେ ଜନମ ଆମର
ଆମ କାମ ପର ସେବା,
ପ୍ରକୃତି ମାତାର ସେବା କରି କରି
ଶେଷରେ ଜୀବନ ଦେବା ।୭।





# ବରଷା ଆଉ ନାହିଁ

ଖରା ଚମକେ କାଚ ପରିକା
ବତୁରା ଦିଶେ ଭୂଇଁ,
ପରଜାପତି ଉଡ଼ି ବୁଲନ୍ତି
ଫୁଲରୁ ଫୁଲ ଛୁଇଁ ।୧।

ନୀଳ ଆକାଶେ ବଉଦ ଖେଳେ
ବଉଦ ମେଳେ ଚିଲ,
ସୋରି ସୋରିକା ପବନ ଛୁଏଁ
ଗହୀର ପାଟ ବିଲ ।୨।

କପୋତ, ପାରା ଚଟିଆ, ବଗ
କାଉ, କଜଳପାତି,
ଦେଖାନ୍ତି ଛଇ ଖୁସି ମନରେ
ସକଳ ପକ୍ଷୀ ଜାତି ।୩।



କାକୁଡ଼ି, ଜହ୍ନି                    ପୋଟଳ, ଭେଣ୍ଡି
ଖଡ଼ା, କଖାରୁ, ପୋଇ
ଦୁଡିଆ ଘାଣ୍ଟେ                    ହୁଅନ୍ତି ମେଳ
ଏକାଠି ସାଙ୍ଗ ହୋଇ ।୪।

ଋମୁଋମିଆ                    କାଙ୍କଡ଼ ଦିଶେ
ତୋଫା ସବୁଜ ରଙ୍ଗ,
ଝୁଡ଼ଙ୍ଗ ଝୁଲେ                    ଛାମୁଣ୍ଡିଆରେ
ଦେଖାଇ କେତେ ଢଙ୍ଗ ।୫।

ସାଧବ ବୋହୂ                    ଗଲାଣି ଲୁଚି
ବରଷା ଆଉ ନାହିଁ,
ଛାତି ଛନକା                    ମେଘ ବିଜୁଳି
ନ ଦିଶେ ଆଉ କାହିଁ ।୬।

ଶରତ ଆଣେ                    ପୂଜା ମଉଚ୍ଛ
ଫଳ ପସରା ମେଲି,
ଝଡ଼ି ବରଷା                    କାଦୁଅ ପାଣି
ଦିଏ ସେ ସବୁ ଠେଲି ।୭।



# କୁଳୁକୁଳୁ ପାଣି ଡାକ

ସରି ଯାଇଥିବା ବରଷା ବେଳାରେ
ପାଦ ଥାପି ଆସେ ମୁହିଁ,
ଫୁଲ ଫଳେ ଭରା ବିଲ ବାଡ଼ି ହିଡ଼
ଚଉକତି ଛୁଇଁ ଛୁଇଁ ।୧।

ସୁନ୍ଦର ଧରଣୀ ସୁନୀଳ ଆକାଶ
କୁଳୁକୁଳୁ ପାଣି ଡାକ,
ଜାତି ଜାତି ଫୁଲ ଘେରିଯାନ୍ତି ମତେ
ହୋଇ ଆପେ ଡାକହାକ ।୧।



ଗ୍ରୀଷ୍ମେ ଯେଉଁଠି ନିଆଁ ଚରୁଥାଏ
ସେଇ ଫଟା ମାଟି ପରେ,
ପରଶେ ମୋହର କେଜାଣି କେମିତି
ସବୁଜ ଜୀବନ ଧରେ ।୩।

ଅଶାନ୍ତ ବାଦଲ ଶାନ୍ତ ହୋଇଯାଏ
କଳା ଭୀମ ରୂପ ଛାଡ଼ି,
ପ୍ରଜାପତି ଦଳ ପଟୁଆର କରି
କୁଆଡୁ ଆସନ୍ତି ମାଡ଼ି ।୪।

କୀଟରୁ ପତଙ୍ଗ ଛୁଆଁ ପାଇ ମୋର
ଉଡାଣି ଉଠନ୍ତି ମାତି,
କେତେବିଧ ରୂପ ଘେରି ଗଛଲତା
ଦେଖାଅନ୍ତି ନିଜ ଥାଟି ।୫।



ଦିବସରେ ଖରା ରାତିରେ ତାରକା
ସବୁ ଟିକ୍ ମିକ୍ କରେ,
ବଉଦ ଆଉଡ଼ା ଧୂଆଁଳିଆ ଜହ୍ନ
ରୁପାଥାଳି ରୂପ ଧରେ ।୬।

ଭୋଦୁଅ ଅଶିଣ ଦୁଇମାସ କାଳ
ଶୋଭାର ପସରା ଧରି,
ବୁଲେ ବାଟଘାଟ ଗାଆଁରୁ ସହର
ସଭିଙ୍କୁ ଆପଣା କରି ।୭।

ମୋ ନାଆଁ ଶରତ ଜଗତର ହିତ
ମୋହର ଚରମ ଲକ୍ଷ୍ୟ,
ପ୍ରକୃତି ରାଣୀର ପରମ ସେବକ
ଶୋଭେ ମୁଁ ତାହାର ବକ୍ଷ ।୮।





# ଟିକି ଟିକି ଫଉଜ

ଶରତ ଆସିଲେ ଆମେ
କରୁ ବଡ଼ ମଉଜ,
ପତଙ୍ଗ ଜଗତେ ଆମେ
ଟିକିଟିକି ଫଉଜ ।୧।

ଆସୁ ଆମେ ନିଶବଦେ
କାଚ ଡେଣା ହଲାଇ
ନାଲି, ନେଳି ନାନାରଙ୍ଗେ
ଟିକି ଛାତି ଫୁଲାଇ ।୨।

ମୁଣ୍ଡ ଦିଶେ ଗୋଲିପରି
ଲାଞ୍ଜ କାଠିପରିକା,
ଗୋଡ଼ରେ ଶିକାର ଧରୁ
ଜାଣୁ ଆମେ ତରିକା ।୩।

ନଈ, ନାଳ, ଘାସବଣ
ପୋଖରୀ ବା ଗଡ଼ିଆ,
ବୁଲୁଥାଉ ଘେରି କାଟି
ବିଲ, ବାଡ଼ି, ପଡ଼ିଆ ।୪।





ମଣିଷର ମିତ ସାଜି
ମଶା କରୁ ଆହାର
ଲାଞ୍ଜ ଗୋଟା ସାରା ପେଟ
ଘର ଆମ ବାହାର ।୫।

ପିଲାମାନେ ଧାଇଁ କେବେ
ପଛଆଡ଼ୁ ଧରନ୍ତି,
ଅଜାଣତେ କେହି କେହି
କଲବଲ କରନ୍ତି ।୬।

ସେହିପାଇଁ କଥା ଅଛି
କଲେ 'କଙ୍କି ଧରଣ'
ଜାଣିଥାଅ ଭାଇମାନେ
ହୁଏ 'ମାଆ ମରଣ' ।୭।

ମିଛ କଥା ହେଉ ପଛେ
କେହି ସାଧୁ ପରାଣ
ଆମ କୁଳ ରକ୍ଷା ପାଇଁ
ଦେଇଛି ଏ ଡରାଣ ।୮।



ହେଲିକପ୍ଟର ଆମେ
ଉଡ଼ିପାରୁ ଗଗନେ,
ଡର ନାହିଁ ଭୟ ନାହିଁ
ଖେଳୁ ନିତି ପବନେ ।୯।

ଆସ କିଏ ଆମ ସାଥେ
ପବନରେ ଧାଇଁବ,
ଶରତ ବେଳାରେ ବୁଲି
ଗୁଣ ତା'ର ଗାଇବ ।୧୦

ᒧᒧᒧ



# କାଶତଣ୍ଡୀ

କାଶତଣ୍ଡୀ ଫୁଲ କହେ
ନଈପଠା ବାଲିକି,
ଆଜି ସିନା ଅଛି ଏଠି
ନ ଥିବି ମୁଁ କାଲିକି ? ।୧।

ଯେତେଦିନ ରହିଥିବ
ଋତୁସାର ଶରତ,
ସେତେଦିନ ଖୁସିରେ ମୁଁ
ରହିଥିବି ମରତ ।୨।

ତୁମେ କିନ୍ତୁ ଚିରନ୍ତନ
ନାହିଁ ତୁମ ମରଣ,
ବରଷାରେ ନଈ ପଶେ
ତୁମ ପାଶେ ଶରଣ ।୩।

ତୁମ ଧାରେ ହସି ଉଠେ
କେତେ ଜାତି ଫସଲ,
ପଟୁସାର ପାଇ ମାଟି
ଫଳଦିଏ ଅସଲ ।୪।





ନଈପଠା ହସି କହେ
ଏ କି କଥା କହୁଛୁ,
ତୋର ଗୁଣ କେ' ନ ଜାଣେ
ଜଗତ ତୁ ମୋହୁଛୁ ।୫।

ତୁହି ପରା ଶୋଭାବତୀ
ଶରତର କୁମାରୀ,
ଦଶହରା ପୂଜା ଆସେ
ତୋର ପଥ ସୁମାରି ।୬।

କିଏ କେତେକାଳ ଜୀଏଁ
ବଡ଼ ତାହା ନୁହଁଇ,
ଉପକାରୀ ଅଟେ ଯିଏ
ସେହି ବଡ଼ ହୁଅଇ ।୭।



# କଇଁଫୁଲ ଯାଏ ଫୁଟି

ବରଷା ଗୋଟାଏ
କଳା ମଇଁଷି
ରଡ଼ିକରେ ସଅଁସଅଁ;
ବଡ଼ ଭୟାନକ
ଚେହେରା ତା'ର
ନଇନାଳ ଫଅଁଫଅଁ ।୧।

ଘଡ଼ଘଡ଼ି ମାରି
ବୁଜିଲି ଆସେ
ଖଣ୍ଡା ତଲୁଆର ଧରି;
ଶାବଳ ପରିକା
ବରଷା ଖସେ
ଗାଆଁଭୂଇଁ ଯାଏ ଥରି ।୨।

କାହା ଅଦଉତି
ରହିନି କେବେ
ବରଷା ରହିବ ନାହିଁ;
ଶ୍ରାବଣ ହଟେଇ
ଶରତ ଆସେ
ବରଷା ପଳାଏ ଧାଇଁ ।୩।



ଆକାଶେ ଉଡ଼ାଇ
ଧଳା ବାଦଲ
ସଜାଡ଼ି ନଈର ଧାର;
କାଶତଣ୍ଡୀ ଫୁଲ
ପତାକା ପୋତି
ମେଲାଏ ପସରା ଭାର ।୪।

ଗାଆଁରୁ ସହର
ଆକାଶ ମାଟି
ସବୁ ଦିଶେ ନିରମଳ;
ନଈନାଳ ଧୀରେ
ଚଲନ୍ତି ବାଟ
ଡାକ ଦେଇ କଳକଳ ।୫।

ପାଠପଢ଼ା ଗାଡ଼ି
ଅଟକିଯାଏ
ଆସିଯାଏ ପୂଜାଛୁଟି;
ନାଲି ନେଳି ଧଳା
କେତେ ନା କେତେ
କଇଁଫୁଲ ଯାଏ ଫୁଟି ।୬।





ମନେ ପଡ଼ିଯାଏ
ମେଢ଼ ସଜାଣ
ହସିଉଠେ ଗାଆଁ ଭୂଇଁ,
ଶରତ ଋତୁର
ତାଜା ପରଶ
ସବୁଆଡ଼ ଯାଏ ଛୁଇଁ ।୭।

ଧାନକଟା ଛୁଟି
ଗ୍ରୀଷ୍ମ ଛୁଟି
ଯେତେ ଛୁଟି ଥିଲେ ଆଉ;
ଦଶ'ରା ପରିକା
ପରବ ଛୁଟି
ନାହିଁ ଭାଇ କାହିଁ ଆଉ ।୮।







# ଅମୂଲ ମୂଲ

ଶରତ ଆମର ସଫା ସୁତୁରା,
ଶରତର ଭୂଇଁ ଶୁଖା-ବତୁରା ।୧ ।

ଆକାଶ ତାହାର ନୀଳ ଦର୍ପଣ,
ମେଘ ଓଳାଇ ସେ କରେ ତର୍ପଣ ।୨।

ନଈ ଧାରେ ଧାରେ ନିର୍ମଳପାଣି,
କାଶତଣ୍ଡୀ ନିଏ ନୟନ ଟାଣି ।୩।

ଖେଳେ ଚଉଦିଗେ ଚହକା ଖରା,
ସବୁଜ ଶାଢ଼ିରେ ସୁନ୍ଦର ଧରା ।୪।

ଜହ୍ନିଫୁଲ କହେ କାକୁଡ଼ି ଫୁଲ,
ତୋ'ର ମୋ'ର ରୂପ ଅମୂଲମୂଲ ।୫।



କାନ ଦୁଲ୍ ପରି ଟୁସି କଲରା,
ଦୋଳି ଖେଳେ ଲୁଚି ଲଟି ଅଲରା ।୬।



ଝରିଝରି ପଡ଼େ ଗଙ୍ଗଶିଉଳି,
ବଡ଼ ଗେନ୍ଥେଇ ସେ ଯାଏ ଝାଉଁଳି ।୭।

ନୂଆ ନୂଆ ଦିଶେ ଘର ଚଉରା,
ଆପେ ବେଶ ହୁଏ ହରଷଭରା ।୮।

ପୂଜାଛୁଟି ହେଇ ଆସିବ ବୋଲି,
ବଧୁଲି ଫୁଟାଏ ମୁହଁରେ ହୋଲି ।୯।

ଶରତ କହଇ ଧୀର ପବନେ,
ଋତୁସାର ମୁହିଁ ରଖିବ ମନେ ।୧୦।

❑❑❑



# ସବୁଆଡ଼େ ଘୋ' ଘା'

ଆଷାଢ଼ ଆସିଲା ମେଘଯାନ ଚଢ଼ି
ବିଜୁଳି ମାଇଲା ଚିରା,
ଖସିଲା ବରଷା ଘଡ଼ଘଡ଼ି ମାରି
ନଇବାଲି ଗିରିଗିରା ।୧

ଶ୍ରାବଣ ପିଠିରେ କଳା କଳା ମେଘ
ଆକାଶ ପଡ଼ିଲା ନଇଁ,
ବରଷା ସୁଆଡି ଖଳଖଳ ପାଣି
ସାଉଁସାଉଁ ହେଲା ନଈ ।୨।



ଭୋଦୁଅ ଘାଣ୍ଟିଲା ବିଲ ବାଡ଼ି ମାଟି
ବାଟ ଘାଟ ଦଲ ଦଲ,
ଖରାକୁ ବରଷା ହେଲେ ଗୋଡ଼ାଗୋଡ଼ି
ବଗ ତହିଁ ପଲପଲ ।୩।

ଅଶିଣ ଆକାଶ ନେଳିଆ ଚଦର
ଧଳା ମେଘ ବୁଲେ ଉଡ଼ି,
ପଲାରେ ପଠାରେ କେତେ ଫୁଲ ଫଳ
ତୋଳା ରଖେ ଝୁଡ଼ିଝୁଡ଼ି ।୪।

ନାଲି ନେଳି କଇଁ ରୁପା କାଶତଣ୍ଡୀ
ଜହ୍ନିଫୁଲ ଠୋଓ ଠାଆ,
ଆସିଲାରେ ଭାଇ ପୂଜାଛୁଟି ବେଳ
ସହୁଆଡ଼େ ଘୋଓଘାଆ ।୫।



କଳା ମଇଁଷିଆ ମେଘ ଆଉ ନାହିଁ
ନାହିଁ ଆଉ ନଈ ବଢ଼ି,
ଚତୁରମାସିଆ ବଦମାସିଆକୁ
ଶରତ ଦେଇଛି ତଡ଼ି ।୬।

ଆକାଶ ସୁନ୍ଦର ପୃଥିବୀ ସୁନ୍ଦର
ଆହା କି ସୁନ୍ଦର ଧରା,
ମାଟି ମାଆ ପୂଜା କରିବା ଆସରେ
ଦଶରା ଆସିଛି ପରା ।୭।





# ସେ ସନ ଶରତ ଆସିଥିଲା

ସେ ସନ ଶରତ ଆସିଥିଲା ଭାଇ
କେତେ ଫୁଲ ଫଳ ଫଳାଇ,
ଶେଫାଳି, ବଧୂଳି, ହରଗଉରାରେ
ତୋଫାମୁହଁ ତା'ର ଗଳାଇ ।୧।

ସୁନୀଳ ଆକାଶ ଦେଖିଲାନି ଆଖି
ଅଡ଼ି ବସିଥିଲେ ବଉଦ,
ବରଷା ନିଅଣ୍ଟ ଖରା ବି ନିଅଣ୍ଟ
ଭାଂଗିଥିଲା ଋଷୀ ସଉଧ ।୨।

ଆସିଥିଲା ସିଏ ତାରିଖ ସୁମାରି
ଖରା ବରଷାକୁ ନ ଭାଳି,
ବିଚର ନ କରି ବିଲବାଡ଼ି କଥା
ଦେଖିଲେ ନ ହୁଏ ସମ୍ଭାଳି ।୩।



ସହର ବଜାର ଦୁଲୁକି ଉଠିଲା
ଗାଆଁରେ ପଡ଼ିଲା ପାହାର,
ବରଷା ହୁଡ଼ିଲେ କ୍ଷେତ ଉଜୁଡ଼ିଲେ
କିଏ ଦେବ ଆଉ ଆହାର ।୪।

ଋଳଘର ଅବା କୋଠା ବାଡ଼ି ହେଉ
ଫସଲ ସବୁରି ଭରସା,
ନ ବୁଝି ଶରତ ଆସିଲା କେମିତି
ହୋଇଛି କି ନାହିଁ ବରଷା ? ।୫।

❘❘❘



# ଦିଏ କୁଆଁ ପରଶ

ଶରତର ଶୋଭାକାନ୍ତି
ନିରିମଳ ସୁନ୍ଦର;
ତା' ମଥାନ ଆକାଶରେ
ଘନନୀଳ ଋଦର ।୧।

ଜଳଜଳ କାଚ ପାଣି
ଛାତି ତା'ର ସବୁଜ;
ଘନବନ ଗଛଲତା
କୋଳାକୋଳି ନିବୁଜ ।୨।

ବିଲମାନେ ସୋରିଯୋରି
ଧାନ କ୍ଷେତ ଗହଳ;
ପୂଜା ମଉଛବେ ଦିନ
ରାତି ସବୁ ଚହଳ ।୩।

ନଈନାଳ ପାଟ ଯୋର
ବାଟଘାଟ ପଡ଼ିଆ;
ଭରାଭରା ନିରିମଳ
ଦିଶେ ବଡ଼ ବଢ଼ିଆ ।୪।



ଦିନ ହସେ ରାତି ହସେ
ହସେ ଋତୁ ଶରତ;
ହସିଉଠେ ତା' ଛୁଆଁରେ
ସାରା ଏଇ ମରତ ।୫।

ଗ୍ରୀଷମ ଆସଇ ଯେବେ
ହଲିଯାଏ ଜୀବନ;
ବରଷା ବି ଦାଉ ସାଧେ
ଝାଡ଼ି ପାଣି ପବନ ।୬।

ତା'ପରେ ଶରତ ଆସେ
ମୁହେଁ ଭରି ହରଷ;
ଖେଳି ବୁଲି ହସ ବୁଣେ
ଦିଏ ନୂଆ ପରଶ ।୭।







"ଶରତ ପାଇଁ ଗୀତ"ର ପ୍ରତିଟି ଗୀତ ଶରତ ଋତୁ ସଂପର୍କରେ ଲେଖାଯାଇଛି । ପିଲାମାନଙ୍କୁ ଭଲ ଲାଗିଲା ଭଳି ଭାବ ଓ ଭାଷାରେ ଲିଖିତ ଏ ଗୀତଗୁଡ଼ିକ ଉଭୟ ସହଜ ଓ ସରଳ ।

ଦାଶ ବେନହୁର, ଓଡ଼ିଆ ସାହିତ୍ୟର ଏକ ଜଣାଶୁଣା ନାମ । ଶିଶୁ-କିଶୋର ମାନଙ୍କପାଇଁ ଲିଖିତ ତାଙ୍କର ପ୍ରତିଟି ସୃଷ୍ଟିରେ ଉଭୟ ଆନନ୍ଦ ଓ ଆଲୋକର ସମ୍ମିଶ୍ରଣ ବେଶ୍ ମନଛୁଆଁ ! ବାଳୁତ ଜୀବନର ବିସ୍ତାରିତ ସବୁଜ ଇଲାକାରେ ଉଙ୍କିମାରୁଥିବା ଅସୁମାରି ପ୍ରଶ୍ନ ହିଁ ତାଙ୍କ ଲେଖକୀୟ ବାସ୍ତବତାକୁ ପ୍ରେରଣା ପ୍ରଦାନ କରେ ।

ସାଂପ୍ରତିକ ଠିକଣା:
"କଥାକାର", ୬ମ-୧୬୧, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧




କାଞ୍ଚନ, ଗଜପତି ନଗର,
ସୁତାହାଟ, କଟକ-୭୫୩୦୦୧

ISBN 978-81-86475-69-0